ଆମରି ମାଆ
ରଚି ଡଃ ମନୋରମା ବିଶ୍ୱାଳ ମହାପାତ୍ର
ପ୍ରକାଶକ: ପ୍ରୀତମ୍ ପ୍ରକାଶନ, ୧୨୫ ଆଚାର୍ଯ୍ୟବିହାର, ଭୁବନେଶ୍ୱର
ପ୍ରଥମ ସଂସ୍କରଣ: ୨୦୦୪, ପ୍ରଚ୍ଛଦ: ବିଭୁ ପ୍ରସୂନ
ଅଳଂକରଣ- ତନୁଜ ମଲ୍ଲିକ୍, ମୁଦ୍ରଣ: ଦିବ୍ୟ ମୁଦ୍ରଣୀ
ମୂଲ୍ୟ: ୨୦ ଟଙ୍କା

***AMARI MAA***

| | |
|---|---|
| by | **Dr. Monorama Biswal Mohapatra.** |
| Publisher | **Pritam Prakasan** |
| | 125 Acharyabihar, Bhubaneswar |
| First Edition | **2004** |
| Cover Design | **Bibhu Prasuna** |
| Inner Design | **Tanuj Mallick** |
| Printed at | **Dibya Mudrani** |
| **Price** | **Rs 20 /-** |



ମୋ ପିଲା ବେଳେ ଥିଲା ଯେମିତି
ଆମ ମାଆ ଆଉ ନାହିଁ ସେମିତି
ମାଆ'ର ଯାଇଛି ବୟସ ହୋଇ
କେତେ ଯେ ଭାବନା ଆମରି ପାଇଁ



ଆଖିକୁ ତାହାର ଦିଶୁନି ଭଲ ।
କମରରେ ନାହିଁ ଆଗର ବଳ ॥

ବସିଲାରୁ ଜମା ପାରୁନି ଉଠି
ଆମ ପାଇଁ ଆଉ ପାରୁନି ଖଟି



ଆଣ୍ଠୁ ଧରିଲାଣି ଫୁଲୁଛି ଗଣ୍ଠି ।
ପାହାନ୍ତାରୁ ତେଣୁ ପାରୁନି ଉଠି ॥











ଆମକୁ ଭଲରେ ରଖିବା ପାଇଁ ।
ହାଡ଼ ମାଉଁସକୁ ମିଶାଇ ଦେଇ ॥



ଆମରି ଜଞ୍ଜାଳ ସଂସାର ଦାଉ ।
କେତେ ନ ସହିଛି ଆମରି ବୋଉ ॥

ତା'ରି ଯତନେ ଆମରି ଘର ।
ଆମ ପାଇଁ ପରା ସରଗ ପୁର ।।





ଆମରି ପାଟିରେ ଆହାର ଦେଇ ।
ଖାଲି ପେଟରେ ସେ ପଡିଛି ଶୋଇ ॥

ତଥାପି ତା ମନ ସଦା ହରଷ ।
କେବେ ବି ତା ମୁଖୁ ଲିଭେନି ହସ  ।।



ଘରର ମୁରବୀ ଆମରି ମାଆ ।
ବିପଦେ ଆପଦେ ସେ ଆମ ସାହା ॥





ଭଲ ଚିଜଟିଏ ରଖେ ଲୁଚାଇ ।
ନିଜେ ନ ଖାଇ ସେ ଦିଏ ଖୁଆଇ ।।



ଘରକୁ ଫେରିବା ଉଛୁର ହେଲେ ।
ଚାହିଁ ବସିଥାଏ ଝରକା କଡେ ॥



ସଭିଏ ଶୁଅନ୍ତି ସେ ଶୁଏ ନାହିଁ ।
ତା ଆଖିରୁ ନିଦ ଯାଏ ଉଭେଇ ॥

ମାଆ କଥା ଆଜି ଦୂର ବିଦେଶେ ।
ଥରକୁ ଥର ତା ମୁହଁଟି ଦିଶେ ।।





ହାଣ୍ଡ ଗଣିହୁଏ ଶିରାକ ଦେହେ ।
କହୁଣା ଚାହାଣୀ ମଳିନ ମୁହେଁ ।।

ପାଦକୁ ଯେବେ ମୁଁ ଦିଏ ଆଉଁସି ।
ଆଖିରୁ ଲୁହ ତା ପଡଇ ଖସି ॥





ଏ ଜୀବନ ଆମ ମାଆର ଦାନ ।
ମାଆ ପୁଣ୍ୟ ବଳେ ଆମରି ପୁଣ୍ୟ ॥



ଆସ ଆଜି ତାର ସେବା କରିବା ।
ସେବାରେ ଜୀବନ ଧନ୍ୟ ମଣିବା ।।

